ଓଁ

# କଲ୍ୟାଣ କୁସୁମ ।

ବାମଣ୍ଡା ଯୁବରାଜ
ଶ୍ରୀମାନ୍ ଦିବ୍ୟଶଙ୍କର ଦେବ ମହୋଦୟଙ୍କ
ଶୁଭ ପରିଣୟୋତ୍ସବ ଉପଲକ୍ଷେ
ବିରଚିତ ।

ଓ

ତା ୧ – ୬ – ୧୯୧୪ ସଃ ପରିଣୟ ବାସରେ
ବିତରିତ ।

ଶର୍ମ୍ମା ଶ୍ରୀହରିହର ମହାପାତ୍ର ।
ଦେବଗଡ

ହିତୈଷିଣୀ ଇଲେକ୍‌ଟ୍ରିକ ମେସିନ ପ୍ରେସରେ
ଶ୍ରୀଦୀନବନ୍ଧୁ ଗଡନାୟକଙ୍କ ଦ୍ୱାରା ମୁଦ୍ରିତ ।

# କଲ୍ୟାଣ କୁସୁମ ।

—:୦:—

## ୧ ମ ଦଳ

( " ବନ୍ଦେ ଅରବିନ୍ଦ-ବାସିନୀ " ବୃତ୍ତରେ )

ବନ୍ଦେ ମାତ ! ହଂସବାହିନୀ

ଇଷ୍ଟ ବସ୍ତ, କାମଧେନୁ  ବିଶ୍ୱ-ମୋହିନୀ । ପଦ ।
ଇଷ୍ଟ ବସ୍ତୁ ପ୍ରସବିନୀ  ଅଷ୍ଟ ଲକ୍ଷ୍ୟ ବିଧାୟିନୀ
ଅପାର ରହସ୍ୟମୟୀ  ଭୂଷିତ ହାସିନୀ । ୧ ।
ବ୍ରହ୍ମାଣ୍ଡ-ପରିବାହିନୀ - ବାହନ - ପରିମୋହିନୀ
ଇଷ୍ଟ ପ୍ରଜ୍ଞା-ପ୍ରବୋଧିନୀ  ପ୍ରାଣ-ନନ୍ଦିନୀ । ୨ ।
ହସ୍ତ-ଅକ୍ଷ ସୂତ୍ରଧରା  ସୁଧା କମଣ୍ଡଳୁ-କରା
ଅଖିଳ ନୟନ ତାରା  ବେଦ-ବାହିନୀ । ୩ ।
ସିଦ୍ଧି-ସୁଧା-ନିସ୍ୟନ୍ଦିନୀ  ହେ ଅମ୍ବା ! ବିଶ୍ୱବନ୍ଦିନୀ
ଏଣୁଭ ଉତ୍ସବେ ଆଜି  ସିଦ୍ଧି ଦାୟିନୀ । ୪ ।

—:୦:—

# ୨ୟ ଦଳ ।

କାମୋଦୀ—ତାଳଝୁଲା ।

ବାଜରେ ଆଜ ମୋ ବୀଣା ଲଲିତ ପଞ୍ଚମତାନେ
ଏପରିଣୟ ଉତ୍ସବେ ମାତି ସୁଖେ କବିଗାନେ । ପଦ

ବାମଣ୍ଡା ଧର୍ମମଣ୍ଡନ ପରଜା ଦୁଃଖ ଖଣ୍ଡନ
ଶ୍ରୀମନ୍ତ ସଚ୍ଚିଦାନନ୍ଦ ନରେଶ ହୃଦ - ବନ୍ଦନେ । ୧
ଦୟାକ୍ଷମା ଜ୍ଞାନବତୀ ପରଜା-ବତ୍ସଳା ସତୀ
ଖଡଅଲ ଧର୍ମ-ଅଧିଶ୍ୱରୀ-ଚିତ୍ତ ବିନୋଦନେ । ୨
ବାମଣ୍ଡା ନେତ୍ର-ନନ୍ଦନ ଶୀତଳ ହୃଦ-ଚନ୍ଦନ
ଶ୍ରୀଦିବ୍ୟଶଙ୍କର ଦେବ - ହୃଦୟ ଅଭିନନ୍ଦନେ । ୩
ରୂପେଗୁଣେ ଅନୁପମା ଖଡଅଲ ରାଜଜେମା
ବାମଣ୍ଡା ଅବନୀ-ଯୁବରାଜ୍ଞୀ-ଚିତ୍ତ ଅହ୍ଲାଦନେ । ୪
ଶାନ୍ତ , ସୁଶୀଳ , ବିନୟ କ୍ଷମା କରୁଣା-ଆଳୟ ,
ପ୍ରବୋଧ ଖଡଅଲୟ-ଗଗନ - ନବତପନେ । ୫ ।
ବେନଅସ ରାଜସୁତ ରାଜସୁତା ରାଜଭ୍ରାତ
ପ୍ରିୟ ବନ୍ଧୁଗଣ- ହୃଦ ଆହ୍ଲାଦ ପ୍ରୀତି-ଚନ୍ଦନେ । ୬

—-ଠ୦୦ଃ୦ଃଠ୦-—

# ତୃୟ ଦଳ ।

ଅନନ୍ଦ ଭୈରବ——ତାଳ ତ୍ରିପୁଟା ।

ଅଜ ଏ ଶୁଭମୟ ପରିଣୟ ଉତ୍ସବେ
ଗାଅ ମଙ୍ଗଳ ଗାନ ହେ । ପଦ ।

ଏ ମଧୁର ବସନ୍ତେ ପୁଷ୍ପିତ ଲତା କୁଞ୍ଜେ
କରେ ବିପଞ୍ଚୀ ଧରି ହେ ,
ମନ୍ଦ ମନ୍ଦ ସମୀରେ ଭସାଇ ପୁଣ୍ୟତାନ
ରସାଇ ଜନମନ ହେ ବନ-ବିଦ୍ୟାଧରି
( ପଦ )
“ ଜୟ ନବ ନଳିନୀ ଖଣ୍ଡଶିଳ ଦୁର୍ଗରେ,
ଶ୍ରୀମତୀ ବ୍ରଜ ଜେମା- ହୃଦ- ପଦ୍ମ ଭାସ୍କର-
ଜୟ ଶ୍ରୀ ଯୁବରାଜ ଦେବ ଦିବ୍ୟ ଶଙ୍କର ”
ବୋଲି ହରଷ ମନେ ତୋଳ ପଞ୍ଚମ ସ୍ୱର । ୧ ।
ସେ ସମୀର ଲହରେ ପ୍ରସରୁ ଦଶଦିଗେ
ଏ ପୁଣ୍ୟ ମଧୁ ତାନ ହେ ,
କ୍ଷିଣି, ତାରକା ସଙ୍ଗେ ବିହରି ନଭେ ରଙ୍ଗେ
କରି କୁସୁମ ବୃଷ୍ଟି ସୁରରମଣୀ ଗଣ ,

( ପଦ )

ଜୟ ନବନଳନୀ - - - - ପଞ୍ଚମ ସ୍ୱର । ୨ ।

କର ଶୁଭ କାମନା ବାଗ୍ଦତ୍ତ-ବକ୍ଷରେ
ଗମ୍ଭୀର ଝଙ୍କନାଦେ ହେ ,
କରୁଣ ସ୍ୱରେ ସୁଖେ ବାରୁଣୀ ବାମାଗଣ
ନାଚ ତ୍ରିପଟା ତାଳେ ମଞ୍ଜୁ ମଞ୍ଜୀର ପାଦେ ;

( ପଦ )

ଜୟ ନବ ନଳନୀ - - - ପଞ୍ଚମ ସ୍ୱର । ୩ ।

ଆଜ ଏ ସଭାସ୍ଥଳେ ଦିଅ ହେ ବନ୍ଧୁଗଣ
ଆନନ୍ଦେ କରତାଳୀ ହେ ,
ଲଳନା କୁଳ ସୁଖେ କର ଶୁଭ କାମନା
ମଧୁର ଉଚ୍ଚ ରବେ ଦିଅ ଗୋ ହୁଳହୁଳ ;

( ପଦ )

ଜୟ ନବ ନଳନୀ - - - ପଞ୍ଚମ ସ୍ୱର । ୪ ।

— —*:O:*— —

# ୪ର୍ଥ ଦଳ ।

## ଝିଙ୍କିଟି — ଝୁଲ

ବାଜିଉଠେ ଅଜ୍ଜ ଶୁଭ ଶଙ୍ଖ ନାଦ
ଖେଳିଅଲ ରଙ୍ଗ ଭବନେ
ଖେଳୁଛୁ ରେ ନବ ଆନନ୍ଦ ତରଙ୍ଗ
ସର୍ବ ନର ନାରୀ ଜୀବନେ
ଆଜି ଏ ଶୁଭ ମଧୁର ମିଳନେ । ଘୋଷା
ଏ ନବ ବସନ୍ତେ ମୃଦୁ ଚୂତ ବନେ
କବି ହୃଦ-କୁଞ୍ଜେ କୋକିଳ କୂଜନେ
ତରଙ୍ଗେ ତରଙ୍ଗେ ବହେ ପ୍ରୀତିସୁଧା
ପ୍ରସର ମଳୟ ପବନେ । ୧ ।
ମନେ ମନେ ହସି ସୁମନା କାମିନୀ
ପୀୟୂଷ ମୋଦେ ବୋଲଇ ଆହ୍ଲାଦିନୀ
ନାଚଇ ହରଷେ ସମୀର ପରଶେ

ହୃଦରୁ ସୁବାସ ଯତନେ । ୨ ।

ମଧୁବିଳାସିନୀ ମାଧବୀଯାମିନୀ ।
ଲାସ୍ୟ-ହାସ୍ୟମୟୀ ହେମ-କୁନ୍ତଳିନୀ
ତୋଷ ଉତ୍ସବାସ ହରଷେ ଆଶୀଷ
ପ୍ରକାଶେ ଲଳିତ ଚୁମ୍ବନେ । ୩ ।

ବାମଣ୍ଡା ମଣ୍ଡଳ ନୟନ-ନନ୍ଦନ
ଯୁବରାଜ , ରାଜ ହୃଦୟ-ଚନ୍ଦନ
ସୁଶୋଭିତ ହେଲେ, ଖଡ଼ିଆଳ ଧରା-
ସ୍ୱଜନ୍ମା-ହୃଦ ରତନେ । ୪ ।

ଦିଅ କରତାଳି ପ୍ରିୟ ବନ୍ଧୁ ଗଣ
ଶୁଭମୟ ହେଉ ଏନବ ମିଳନ
ନବଦମ୍ପତିଙ୍କି ଆଶୀଷକୁ ଦବୁ
କଲ୍ୟାଣ-କୁସୁମ ଚନ୍ଦନେ । ୫ ।

———o:○:o———

## ୫ ମଙ୍ଗଳ ।

ଶଙ୍କରାଭରଣ—ତାଳଚଉତାଳ ।

ଉଚ୍ଛେଦଅ ହୁଳାହୁଳ

ଏଶୁଭ ଉତ୍ସବେ ଅଛ ସର୍ବ ବାମା ମିଳି । ପଦ ।

ଖଣ୍ଡଥଳ— ରାଜକନ୍ୟା, ହୃଦୟ ରତନେ

ବାଗ୍‌ଦତ୍ତା ଅବନା ଯୁବରାଜଙ୍କ ମିଳନେ । ୧ ।

ବାଜ ଉଠେ ଶୁଭ ଶଙ୍ଖ ବେଦଧ୍ୱନି ସଙ୍ଗେ

ମଧୁରବେ ମଧୁରିକା ମାଳଶ୍ରୀ ତରଙ୍ଗେ । ୨ ।

ନଚାଇ ହୃଦୟ ପଦ ଉନ୍ନତ ବିଷାଣ

ବାଜ ଉଠେ ଢୋଲ ସଙ୍ଗେ ଉନ୍ମତ୍ତ ନିଷାଣ । ୩ ।

ନଭେ ଉଠେ ଏକଘୋଷ, ନିଖିଳ ହୃଦୟ

ଅପୂର୍ବ ଉଲ୍ଲାସେ ହେଉ ଉତ୍ସବେ ତନ୍ମୟ । ୪ ।

ପୂର୍ଣ୍ଣଘଟ, ଚମ୍ପୁତରୁ, କୂଟପତ୍ରେ ଶୋଭା

ସଜ୍ଜିତ ଦ୍ୱାରରେ ପ୍ରକ୍ଷଦ୍ୱାର ମନୋଲୋଭା । ୫ ।

ନାଚନ୍ତୁ ମଙ୍ଗଳଗାନେ ବାଗଙ୍ଗନାଚୟ
ଚଳି ଭାଳେ ପଦ କରି ଭାବେ ଅବଲୟ । ୬ ।
ହରି କଲ୍ୟାଣ କାମନା ପବନ ମାନସେ
ଗାଇ ସୁମଙ୍ଗଳ ଗୀତ ନବୀନ ହରଷେ । ୭ ।
ଅର୍ପନ୍ତୁ ଦୟାମୟୁ ଜଗତବନ୍ଦନ
ନାଥ ଦମ୍ପତିଙ୍କ ଶିରେ କୁସୁମ ଚନ୍ଦନ । ୮ ।

—--*O*---—

## ୬ଷ୍ଠ ଦଳ ।

### ଲକ୍ଷ୍ମୀ-ପୂଜା

ବହେ ପୂର୍ଣ୍ଣ ପ୍ରେମ ମନ୍ଦାକିନୀ ଧାର
ନାଚନ୍ତୁ ଉଲ୍ଲାସେ ନରେ କୋଟିତାରା । ପଦ ।

ଫୁଟିଉଠେ ଦିବ୍ୟ ପାରିଜାତ ଫୁଲ
ନିଖିଳ ହୃଦୟ କରାଇ ପ୍ରଫୁଲ୍ଲ
ସୁରଭି ଆମୋଦେ    ମନ୍ଦ ଗନ୍ଧବହ
ଲୋଟି ଖେଳେ ହୋଇ ଜନ ମନୋହରା । ୧ ।

ଦଗ୍‌ବଧୂ କୁନ୍ତଳେ ମଣି ପୁଞ୍ଜ ଖଞ୍ଜି
ମଞ୍ଜୁ ବେଶେ ହସି ଜନ ମନ ରଞ୍ଜି
କରେ ଜମ୍ପ ନାଦ　　ସୁମଙ୍ଗଳ ବାଦ
ଫେଡ଼ ଜନ ମନ ଦୁଃଖାଧାନ-କାର୍ । ୨ ।
ଦୀପ୍ତ ଦୀପାବଳ-ଶୋଭି ସୌଧମାଳା
ପ୍ରକାଶେ ଉଚ୍ଚରେ ବିଳାସିନୀ ଲୀଳା
ଏମଙ୍ଗଳ ଘୋଷେ　　ତୋଳି ପ୍ରତି ଧ୍ୱନ.
ଖେଳାଏ ପ୍ରମୋଦ-ନଦେ ମନ-ପାର୍ । ୩ ।
ଖଡ଼ଅଲ-ରାଜ କୁମାରୀ ରତନ
ସଙ୍ଗେ ଯୁବରାଜ ବାମଣ୍ଡା ମଣ୍ଡନ
ସ୍ୱୟମ୍ଭୂ ଅଶୀଷେ　　ଲଭନ୍ତୁ ଦୀର୍ଘାୟୁ
ହେଉ ତାଙ୍କଭାଗ୍ୟେ ସୁଖମୟୀ, ଧରା । ୪ ।

---

## ୭ମ ଦଳ ।

ଭୈରବୀ-ଏକତାଳୀ ।

ଫୁଟି ଉଠେ ହୃଦ କାନନେ, ପ୍ରୀତି ସୁମନ,
ଆଜ ଏମନ ମୋହନ ସୁଷମା କରେ ଲୋଚନ । ପଦ ।
ଖଡ଼ଅଲ ଧରା ଅଙ୍କ　　ହାସନୀରେ ମୁଖମାଜି

ନବ ବେଶେ ତନୁ ସାଜି
ପିନ୍ଧିଛ କରି ଯତନ ଜ୍ୟୋତି-ରତନ-ବସନ ।୧।

ବିବିଧ ବାଜଣା ନାଦ    ନବାଇ ଦୁହୁଁ ବିଷାଦ
ଜନ୍ମାଏ ନବ ଆହ୍ଲାଦ
ସଉଧେ ସଉଧେ ଖେଳ କରି ମନ ଉଚ୍ଚାଟନ ।୨।

ନବ ସୁଖେ ନବହାସେ    ନବବେଶେ ପ୍ରୀତିଭାଷେ
ବିହରନ୍ତୁ ସହରଷେ
ଦୋଇ ନରନାରୀ ଆଜ ପୁଲକ-ସରେ ମଗନ ।୩।

ଆଜ ଏସଭା ସଦନେ    ସର୍ବ ପ୍ରିୟବନ୍ଧୁମାନେ
ଶୁଭବାଞ୍ଛି, ଜମ୍ପନ୍ତେ
ନବ ଦମ୍ପତିଙ୍କ ଙ୍କର ଆନନ୍ଦେ ଅଭିନନ୍ଦନ ।୪।

## ୮ମ ଦଳ ।

### ପୁନ୍ନାଗ-ଫୁଲ ।

ବାଜ ଆଜ ବୀଣା ମଧୁ ତାନରେ
ଯେ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ
ବାମଣ୍ଡା ଭୂପଙ୍କ ଜସ୍ତୁଗାନରେ । ପଦ ।
ବ୍ରାହ୍ମୀ ଧମଲେଟେ ଶାନ୍ତ ତଟିନୀ
ରାଜ୍ୟେ ଯା'ର ହୋଇ ମୃଦୁ ବାହିନୀ
ପ୍ରଧାନ ପ୍ରପାତ ସମ ଭକ୍ତି ଝର
ଝରେ ଯା'ର ପ୍ରଜାଜନ ମନରେ । ୧ ।
ନବ ନୀତିବଳେ ରାଜ୍ୟ ଶାସନେ
ରତ ଯେ ନିରତେ ପ୍ରଜା ରଞ୍ଜନେ
ନୀରମ୍ବୁ ପ୍ରଦେଶେ କୁଲ୍ୟାମ୍ବୁ ଖେଳାଇ
ରତ ଯେ ସ୍ୱରାଜ୍ୟ ସୁଖ-ଦାନରେ । ୨ ।
ବିଜ୍ଞାନ-ଅମୋଦେ କବିତ୍ୱ-ରସେ
କାଟନ୍ତ କାଳ ଯେ ଅତି ହରଷେ
ସୁଜନ ମଣ୍ଡଳୀ କୃତାର୍ଥ ହୁଅନ୍ତ
ସନ୍ନିଧାନେ ଯା'ର ସନମାନରେ । ୩ ।

ପଋଚ୍ଛର ରୂପେ ପଣ୍ଡିଦାମିନୀ
ସେବାଙ୍କରେ ଯା'ର ସର୍ବ ଯାମିନୀ
ନାନାଯନ୍ତ୍ର ଅର୍ଣି    ରଚି ଯେ ପ୍ରଜାଙ୍କୁ
ଶିକ୍ଷା ଦାନେ ନବ ନବ ଜ୍ଞାନରେ । ୪ ।

ଯା' କରୁଣା ଧାରା ହୃଦୟେ ଅଜ
ଫୁଟାଏ ଆନନ୍ଦ-କୁସୁମ ରାଜି
ଯା' ଯୋଗଁ ହୃଦୟ    ଏମ୍ଭୁର ଉତ୍ସବେ
ପୁଲକିତ ନବ ପ୍ରୀତି-ଯତନରେ । ୫ ।

"ଜୟ ଦୀନଜନ-ଦୁଃଖ ଭଞ୍ଜନ
ଜୟ ମହାରାଜ ପ୍ରଜା-ରଞ୍ଜନ
ଜୟ ସୁଧୀକୁଳ—    କୁମୁଦ-ଚନ୍ଦ୍ରମା"
ବୋଲି ସର୍ବଲୋକ ଉଚ୍ଚସ୍ୱନରେ । ୬ ।



# ବିଜ୍ଞାପନ ।

## ସମ୍ବଲପୁର ହିତୈଷିଣୀ ।

### ସାପ୍ତାହିକ ସମ୍ବାଦ ପତ୍ରିକା ।

ମୂଲ୍ୟ ଅଗ୍ରୀମ ଦୁଇଟଙ୍କା ମାତ୍ର ।

ଏହି ସମ୍ବାଦ ପତ୍ରିକାରେ ଦେଶ ବିଦେଶର ସକଳ-ପ୍ରକାର ସଂବାଦ, ପୃଥିବୀର ନୂତନ ନୂତନ ବିଚିତ୍ର ଘଟଣା-ଯାହା ଶିକ୍ଷଣୀୟ ଓ ଆମ୍ଭମାନଙ୍କର ଜୀବନପଥର ସହାୟ ତାହା ପ୍ରତି ସପ୍ତାହରେ ପ୍ରକାଶିତ ହୁଏ ।

ଏଥିରେ ସାହିତ୍ୟ-ଶିକ୍ଷା-କୃଷି-ବାଣିଜ୍ୟ-ବିଜ୍ଞାନ-ଧର୍ମ୍ମ ଓ ସାମାଜିକ ରୀତି-ନୀତି-ଉନ୍ନତିର ଅଲୋଚନା କରାଯାଇଥାଏ । କହିବାକୁ ଗଲେ ଏଥିରେ ସାପ୍ତାହିକ ଓ ମାସିକ ପତ୍ରିକାର ଉଭୟ କାର୍ଯ୍ୟ ହୁଏ ।

ଏହି ପତ୍ରିକାରେ ସୁରୁଚି-ସଦ୍‌ଭାବ ସମ୍ପନ୍ନ ସୁନ୍ଦର ସୁନ୍ଦର କବିତା ଓ ପ୍ରବନ୍ଧାଦି ସର୍ବଦା ପ୍ରକାଶିତ ହୁଏ । ଏବାଦେ ପ୍ରତିବର୍ଷ ଗ୍ରାହକ ମାନଙ୍କର ମନୋରଞ୍ଜନ ନିମନ୍ତେ ମଧ୍ୟେ ମଧ୍ୟେ ଅଭିନବ କାବ୍ୟ ପ୍ରଭୃତି ପୁସ୍ତକ ଉପହାର ଦିଆଯାଏ । ଅଧୁନା ବିଜ୍ଞକବି ବାମଣ୍ଡାଧୀଶ୍ବର ଶ୍ରୀମାନ୍-

ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମହୋଦୟଙ୍କର ମଧୁର ଲେଖନୀ ନିଃସୃତ ମଧୁମୟ ଗୀତିକାର, ନବନବ ଭାବ ଉନ୍ମେଷକ-ଭାବମୟୀ ପ୍ରକୃତିର ଜୀବନ୍ତ ଚିତ୍ର-'ଯୌବନ-ଜୀବନ' କାବ୍ୟ ଉପହାର ଦିଆଯାଉଅଛି । ଯେଉଁ-ମାନେ ଏହି କାବ୍ୟ ପାଠ କରିବେ ପ୍ରତି ଛତ୍ର ପାଠ କରିବାବେଳେ ସେମାନଙ୍କର ପ୍ରାଣ ପୁଲକିତ ହେବ ।

ଘରେବସି ସକଳ ବିଷୟରେ ନୂତନ ନୂତନ ତତ୍ତ୍ୱ-ତଥ୍ୟ ସଂଗ୍ରହ ଓ ଜ୍ଞାନ-ଅଭିଜ୍ଞତା ଉପାର୍ଜ୍ଜନ କରିବା ନିମନ୍ତେ-ପୁତ୍ର କନ୍ୟା ମାନଙ୍କୁ ଶିକ୍ଷାଦେବା ନିମନ୍ତେ--ଅବକାଶ ସମୟଟିକ ଅମୃତଦାୟିନୀ ସରସ୍ୱତୀଙ୍କର ସେବା ଧ୍ୟାନରେ ରହିବା ନିମନ୍ତେ-ଏନଶ୍ୱର ଜଗତରେ ବହୁକ୍ଷଣ ସଂସାର ଜ୍ୱାଳା ଭୁଲି ସ୍ୱର୍ଗୀୟ ସୁଖ-ଶାନ୍ତି ପାଇବା ନିମନ୍ତେ—ମାତୃଭାଷାର —ମାତୃଭୂମିର, ସ୍ୱଦେଶ-ସ୍ୱଜାତି-ସ୍ୱସମାଜର ଉନ୍ନତି ନିମନ୍ତେ-ଅଗ୍ରୋନ୍ନତି ନିମନ୍ତେ ପ୍ରଧାନ ଉପାୟ ସଂବାଦ ପତ୍ରିକା । ଏସକଳ ଉଦ୍ଦେଶ୍ୟରେ ସମ୍ବଲପୁର ହିତୈଷିଣୀ ପାଠ କରନ୍ତୁ । ଖଣ୍ଡିଏ ସୁପରି-ଚାଳିତ ପତ୍ରିକା ପାଠରେ ନାନାବିଧ ପୁସ୍ତକ ପଠନର ଫଳମିଳେ ।

ଦୁଇଗୋଟି ମାତ୍ର ଟଙ୍କା ଦେଲେ ଡାକଯୋଗେ ସାତଦିନକୁ ସାତଦିନ ଏକବର୍ଷ ଘରେବସି ସମ୍ବଲପୁର ହିତେଷିଣୀ ସଂବାଦ ପତ୍ରିକା ପାଇବେ । ଯେତେବେଳେ କୌଣସି ସ୍ଥାନକୁ ଯିବେ ପତ୍ରଦେଲେ ସେହିସ୍ଥାନକୁ ଯଥାବିଧିରେ କାଗଜ ପଠାଇବୁଁ । କୌଣସି ହପ୍ତାରେ କାଗଜ ନପାଇଲେ ପତ୍ରଦେଲେ ଡାକଘରକୁ ଲେଖି ପ୍ରତୀକାର କରାଯାଏ ପୁଣି ଖଣ୍ଡେ କାଗଜ ପଠାଇ ଦିଆ-ଯାଏ ।

ଖବର କାଗଜ ପଠାଇବା ନିମନ୍ତେ ବର୍ଷକୁ ବାର-ଅଣା ଡାକଖରଚ ଲାଗେ । କାଗଜର ଦାମ, ଛପା-ଖରଚ ପ୍ରଭୃତି ହିସାବକଲେ ଅତି ସାମାନ୍ୟ ମାତ୍ର ଲାଭ ରହେ । ହିତୈଷିଣୀ କାଗଜର ମୂଲ୍ୟ ସର୍ବସାଧାରଣଙ୍କ ନିମନ୍ତେ ଦୁଇଟଙ୍କା ଓ ଛାତ୍ରମାନଙ୍କନିମନ୍ତେ ଟ ୧ । ଏକଟଙ୍କା ଚାରିଅଣା ମାତ୍ର । ପ୍ରକାଶ ଥାଉକି ଗଦ୍ୟ-ପଦ୍ୟ ପ୍ରବନ୍ଧ ଓ ସ୍ଥାନୀୟ ସଂବାଦ ଇତ୍ୟାଦି ଛାପିବା ସକାଶେ କିଛି ନିଆଯାଏ ନାହିଁ । ସ୍ୱୀକୃତ ଲେଖକ ମାନଙ୍କ କାଗଜ ବିନା ମୂଲ୍ୟରେ ବିନା ଡାକ ଖରଚରେ ଦିଆଯାଏ ।

ଗତ ତା ୧୨ ରିଖ ଅକ୍ଟୋବର ହିତୈଷିଣୀର ୨୩ ଶ

ବର୍ଷ ବୟସ ପୂର୍ଣ୍ଣ ହୋଇଅଛି । ଅମ୍ଭେମାନେ ଅନୁରୋଧ କରୁଅଛୁଁ ବିଳମ୍ବ ନକରି ଗ୍ରାହକଶ୍ରେଣୀ ଭୁକ୍ତ ହେଉନ୍ତୁ । ବର୍ଷରେ କେତେଅଡ଼େ କେତେବ୍ୟୟ ହେଉଅଛି , ଏହି ଦୁଇଟଙ୍କା ସହିତ ଉପରଲିଖିତ ପ୍ରସଙ୍ଗ ଦୃଷ୍ଟିକୁ ତୁଳନା କରି ଦେଖନ୍ତୁ--ଆପଣଙ୍କର ଏହିଟଙ୍କା ଅବଶ୍ୟ ସଦ୍‌ବ୍ୟୟ ହେବ । ଯେ କୌଣସି ସମୟେ ଗ୍ରାହକ ହୋଇ ପାରିବେ । ଯେଉଁ ତାରିଖରୁ ଗ୍ରାହକ ହେବେ ସେହି ତାରିଖଠାରୁ ହିତୈଷିଣୀର ବର୍ଷଶେଷ --ଦଶହରା ପର୍ଯ୍ୟନ୍ତ ହିସାବ କରି ମୂଲ୍ୟ ନିଆଯାଏ । ଦଶହରାଠାରୁ ହିତୈଷିଣୀର ବର୍ଷ ଅରମ୍ଭ ହୁଏ ।

ସମ୍ବଲପୁର ହିତୈଷିଣୀ ଅଫିସ
ଦେବଗଡ଼ , ବାମଣ୍ଡା ( ସମ୍ବଲପୁର )
ତା ୨୫ ।୧୦ ।୧୯୧୨

ଶ୍ରୀ ଧନବନ୍ଧୁ ଗଡ଼--
ନାୟକ ସମ୍ପାଦକ

---

ସାନୁନୟ ଅନୁରୋଧ , ଏହି ବିଜ୍ଞାପନ ପାଠ ପରେ ଅନୁଗ୍ରହ କରି ବନ୍ଧୁ ବାନ୍ଧବ ପ୍ରଭୃତି ଶିକ୍ଷିତ ବ୍ୟକ୍ତିଙ୍କ ହସ୍ତରେ ଅର୍ପଣ କରିବେ ।

# ନୂତନ ପୁସ୍ତକ ।

ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ ( ରାଜକବି ବାମଣ୍ଡାଧୀଶ୍ବର ମହୋଦୟଙ୍କ ବିରଚିତ ) ଠ° ୳

ରଘୁବଂଶ ପୂର୍ବାର୍ଦ୍ଧ ( ଶ୍ରୀମାନ୍ ବଳଭଦ୍ର ଦେବ ବଡ଼-କୁମାର ମହୋଦୟଙ୍କ ପ୍ରଣୀତ ) ଠ° ।

କୁସୁମହାର ,, ଠ° ୵

ଶିବସ୍ବରୀ ,, ଠ° ୬

ଉତ୍କଳ ଚରିତ ( ପଣ୍ଡିତ ଭାଗୀରଥି ରଥ ଶର୍ମାଙ୍କ ପ୍ରଣୀତ ) ଠ° ୳

ଯୌନ-ନିର୍ବାଚନ ( ରାଜକବି ବାମଣ୍ଡାଧିପତି ଶ୍ରୀମାନ୍ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମହୋଦୟଙ୍କ ରଚିତ—ଲବଙ୍ଗସ୍ମୀ ପ୍ରକୃତିର ଜୀବନ୍ତ ଚିତ୍ର ) -- ଠ° ।

ଶୋଭା ସୁନ୍ଦରୀ ( ପ୍ରକୃତିର ବିଚିତ୍ର ଚିତ୍ର ) ସମ୍ବଲ-ପୁର ହିତୈଷିଣୀ ପତ୍ରିକାର ସମ୍ପାଦକ ଶ୍ରୀଦୀନବନ୍ଧୁ ଗଡ଼ନାୟକଙ୍କ ପ୍ରଣୀତ । ରାଜକବି ବାମଣ୍ଡାଧୀଶ୍ବର

ଶ୍ରୀମାନ୍ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମହୋଦୟଙ୍କ ଦ୍ୱାରା ପ୍ରଶଂସିତ । ୧୦/

ଧର୍ମ-କର୍ମ (ଜାତୀୟ ଉଦ୍‌ବୋଧନ) ବାମଣ୍ଡା ରାଜଭ୍ରାତା ଶ୍ରୀମାନ୍ ବଳଭଦ୍ର ଦେବ ବଡ଼କୁମାର ସାହେବଙ୍କ ଦ୍ୱାରା ପ୍ରଶଂସିତ । ,, ୫୦/

ଜୀବନ ତରଙ୍ଗ (ନୈତିକ ଜୀବନ) ,, ୫୦/

ପଞ୍ଚଶ୍ରମ (ପାଶ୍ଚାତ୍ୟ ଜଗତର ବହୁମୂଲ୍ୟ ମତ),, ୧୦/

ଦୁର୍ଗାବ୍ରତ - - - ୫୦/୬

ଦୁଇସଙ୍ଗାତ - - - ୫୦/୨

ହେମକମଳିନୀ - - - ୧୦/୬

ଶ୍ରୀ ଅର୍ତ୍ତତ୍ରାଣ ମିଶ୍ର ସେକ୍ରେଟେରୀ
ବୁକ୍‌ପାବ୍ଲିଶିଂ କୋମ୍ପାନୀ ଲିମିଟେଡ
ପୋଃ ଦେବଗଡ (ସମ୍ବଲପୁର ଜିଲ୍ଲା)